# ସର୍ଦ୍ଦାର ପଟେଲ



ଉଦୟନାଥ ଷଡ଼ଙ୍ଗୀ

# ସର୍ଦ୍ଦାର ପଟେଲ

## କୁହାର ମଣିଷ

କଚେରୀରେ ଭାରି ଭିଡ଼ । ଗୋଟିଏ ଫଉଜଦାରୀ ମକଦ୍ଦମାର ବିଚାର ଚାଲିଛି । ଆସାମୀ ପକ୍ଷରୁ ଜଣେ ଯୁବକ ଓକିଲ ଲଢ଼ୁଛନ୍ତି ।

ଓକିଲ ଜାଣନ୍ତି, ଆସାମୀର କିଛି ଦୋଷ ନାହିଁ । ତେଣୁ ତାକୁ ଖଲାସ କରିଦେବାକୁ ହେବ । ସେଥିପାଇଁ କାଗଜପତ୍ର, ଆଇନ ବହି ଘାଣ୍ଟା-ଚକଟା କରି ବହୁତ ନଜର ରଖିଥାଆନ୍ତି । କଚେରିରେ ଠିଆ ହୋଇ ସାକ୍ଷୀକୁ ନାନାପ୍ରକାର ଜେରା କରୁଥାଆନ୍ତି । ସାକ୍ଷୀ ସବୁ କଥାର ଉତ୍ତର ଠିକ୍ ଠିକ୍ ଦେଇପାରୁ ନ ଥାଏ ।

ଏହି ସମୟରେ ଜଣେ ଲୋକ ଓକିଲଙ୍କ ହାତକୁ ଗୋଟାଏ ଟେଲିଗ୍ରାମ ବଢ଼ାଇଦେଲା । ଓକିଲ ତଳକୁ ମୁହଁ କରି ଟେଲିଗ୍ରାମ ଖୋଳଟା ଚିରି ପକାଇଲେ; କାଗଜଖଣ୍ଡିକ ଫିଟାଇ ତା ଉପରେ ଥରେ ଆଖି ବୁଲାଇ ଦେଲେ, ମୁହୂର୍ତ୍ତେ ସମୟ ବି ଲାଗିଲା ନାହିଁ । ତା ପରେ କାଗଜ ଭାଙ୍ଗି ପକେଟରେ ପୂରାଇ ଦେଲେ । ଠିକ୍ ପୂର୍ବ ପରି ସାକ୍ଷୀକୁ ଜେରା କରିବାରେ ଲାଗିଲେ ।

ଜେରାରେ ବହୁତ ବେଳ କଟିଗଲା । ଓକିଲଙ୍କ କାମ ସରିଲା । ସେ ଦିନର ବିଚାର ମଧ୍ୟ ଶେଷ ହେଲା । ଓକିଲ ହାକିମଙ୍କଠାରୁ ବିଦାୟ ଆଣି ପଦାକୁ ଆସିଲେ । ସେତେବେଳେ ଯାଇ ତାଙ୍କ ମୁହଁଟି ଶୁଖିଗଲା । ସାଙ୍ଗ ଓକିଲମାନେ ପଚାରିଲେ, "କଅଣ ଟେଲିଗ୍ରାମ ଆସିଥିଲା କି ?"

ଓକିଲ ପକେଟରୁ ଟେଲିଗ୍ରାମଟି କାଢ଼ି ଚୁପ୍ କରି ସେମାନଙ୍କ ହାତକୁ ବଢ଼ାଇଦେଲେ । ସେଥିରେ ଲେଖାଥିଲା—ତୁମ ସ୍ତ୍ରୀ ଆଜ ମରିଗଲେ ।

ଏହା ପରି ଓକିଲମାନେ କାବା ହୋଇଗଲେ । ନିଜର କେହି ମରିଗଲା—ଏ ଖବର ପାଇ କେତେ ଜଣ ବା ଧୈର୍ଯ୍ୟ ଧରି ରହିବେ ? ଅଥଚ ଏ ଓକିଲର ମନ ଏତେ ଟାଣ ଯେ, ନିଜ କାମରୁ ସେ ଟିକିଏ ହେଲେ ଟଳିଲା ନାହିଁ କି ନିଜ କର୍ତ୍ତବ୍ୟରେ ମୁହୂର୍ତ୍ତେ ହେଲେ ହେଳା କଲା ନାହିଁ ।

ଏପରି ଦୃଢ଼ ମନ ଯାହାର, ସେ ଯେଉଁ କାମରେ ହାତ ଦେବ, ତାହା ନିଶ୍ଚୟ ହେବ ହିଁ ହେବ ।

ଏ ଓକିଲ ହେଉଛନ୍ତି ସର୍ଦ୍ଦାର ବଲ୍ଲଭଭାଇ ପଟେଲ । ତାଙ୍କୁ ସମସ୍ତେ "ଲୁହାର ମଣିଷ" ବୋଲି କହନ୍ତି । ଲୁହାପରି ସେ ଟାଣ, କିନ୍ତୁ ଫୁଲ ପରି ବି ତାଙ୍କ ମନଟି କୋମଳ । ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଲଢ଼ିବାକୁ ସେ ଯେପରି ବୀର । ସେଇଥିପାଇଁ ମହାତ୍ମା ଗାନ୍ଧି ତାଙ୍କୁ ଆଦର କରୁଥିଲେ । ତାଙ୍କ କାମ ଦେଖି ତାଙ୍କୁ ଉପାଧି ଦେଇଥିଲେ 'ସର୍ଦ୍ଦାର' ।

## ଦଣ୍ଡାମାର୍କା ଓକିଲ

ବଲ୍ଲଭଭାଇ ପଟେଲଙ୍କ ଘର ଗୁଜରାଟରେ । ତାଙ୍କ ବାପାଙ୍କ ନାମ ଜବେରଭାଇ । ପ୍ରକୃତରେ ସେ ବଡ଼ ଜବରଦସ୍ତ ଲୋକ ଥିଲେ । ସେ ସାଧାରଣ କୃଷୀ ଘରର ପିଲା । ମାତ୍ର ତାଙ୍କ ମନ ଭାରି ଟାଣ ଥିଲା । ବହୁ ଦିନ ତଳେ ଆମ ଦେଶରେ ଥରେ ସିପାହୀ ବିଦ୍ରୋହ ହୋଇଥିଲା । ଦେଶର ସିପାହୀମାନେ ଏକଯୁଟ ହୋଇ ଇଂରେଜ ସରକାର ବିରୁଦ୍ଧରେ ଲଢ଼ି-ଥିଲେ । ସେତେବେଳେ ଜବେରଭାଇ ସିପାହୀମାନଙ୍କ ସହିତ ଯୋଗ ଦେଇଥିଲେ ।

ବଲ୍ଲଭଭାଇ ୧୮୭୫ ମସିହା ଅକ୍ଟୋବର ମାସ ୩୧ ତାରିଖରେ ଜନ୍ମ ହୋଇଥିଲେ । ତାଙ୍କର ଆଉ ଚାରୋଟି ଭାଇ ଓ ଗୋଟିଏ ଭଉଣୀ ଥିଲେ । ପିଲାଦିନେ ସେ ମାମୁଁ ଘରେ ରହି ବଢ଼ିଥିଲେ ।

ଜବେରଭାଇ କୃଷିକାମ କରି ଚଳୁଥିଲେ; କିନ୍ତୁ ପିଲାଏ ଯେପରି ଭଲ ପଢ଼ାପଢ଼ି କରିବେ, ସେଥିପାଇଁ ଲାଗିପଡ଼ିଥିଲେ । ବଲ୍ଲଭଭାଇ ବଡ଼ ବୁଦ୍ଧିଆ

ଥିଲେ; ଗାଁ ସ୍କୁଲରେ ପଢ଼ିଲାବେଳେ ଭଲ ପଢ଼ୁଥିଲେ । ତେଣୁ ଶିକ୍ଷକ ତାଙ୍କୁ ସବୁ ପିଲାଙ୍କଠାରୁ ବେଶୀ ଆଦର କରୁଥିଲେ ।

ସେ ମାଟ୍ରିକୁଲେସନ ପରୀକ୍ଷାରେ ପାଶ୍ କରି ଓକିଲାତି ପଢ଼ିଲେ । ଦୁଇ ବର୍ଷ ପରେ ଓକିଲ ହୋଇ ରୋଜଗାର କରିବାରେ ମନ ଦେଲେ । ଅଳ୍ପ ଦିନ ମଧ୍ୟରେ ତାଙ୍କର ବେଶ୍ ନାମଡାକ ହେଲା । ଯେତେ ପ୍ରକାର ଫଉଜଦାରୀ ମକଦ୍ଦମା, ସେ ସବୁକୁ ପଟେଲ ହାତକୁ ନେଉଥିଲେ । ଆଇନ କାନୁନ ଭଲରୂପେ ପଢ଼ି ଏପରି ଯୁକ୍ତି କରୁଥିଲେ ଯେ, ଅନ୍ୟ ପକ୍ଷ ବରାବର ହାରି ଯାଉଥିଲେ । ପଟେଲଙ୍କ ପକ୍ଷର ଜୟ ହେଉଥିଲା ।

ସେ ମକଦ୍ଦମାଟିଏ ହାତକୁ ନେଲେ ଖିଆପିଆ ଭୁଲି ଯାଉଥିଲେ । ମନପ୍ରାଣ ଦେଇ ସେ ମକଦ୍ଦମା କଥା ଭାବୁଥିଲେ । ମକ୍କେଲଙ୍କୁ କିପରି ଜିତାଇ ଦେବେ, ତାହା ଥିଲା ତାଙ୍କର ଅସଲ ଚିନ୍ତା । ସେତେବେଳେ ନିଜ କଥା କି ନିଜ ଘରର କଥା କିଛି ତାଙ୍କ ମନରେ ପଶୁ ନ ଥିଲା । ଏଥିପରି ଗୋଟିଏ ମକଦ୍ଦମାରେ ଜେରା କରୁଥିଲା ବେଳେ ସେ କିପରି ନିଜ ସ୍ତ୍ରୀଙ୍କ ମୃତ୍ୟୁ ଖବର ପାଇଥିଲେ, ଅଥଚ ଏପରି ଖବର ପାଇ ମଧ୍ୟ ଜେରାରୁ ଟିକିଏ ହେଲେ ଟଳିଯାଇ ନ ଥିଲେ, ସେ କଥା ଆଗରୁ ତ ଜାଣିଛ ।

## ପଟେଲ ବାରିଷ୍ଟର ହେଲେ

ପଟେଲଙ୍କର ଗୋଟିଏ ଝିଅ ଓ ଗୋଟିଏ ପୁଅ । ଝିଅର ନାମ ମଣିବେନ୍ ପଟେଲ ଓ ପୁଅର ନାମ ଦୟାଭାଇ ପଟେଲ । ମାଆ ମଲାବେଳକୁ ପିଲା ଦୁହେଁ ଅତି ଶିଶୁ ହୋଇଥିଲେ ।

ସର୍ଦ୍ଦାର ପଟେଲ ଆଉ ବିବାହ କଲେ ନାହିଁ । ଓକିଲାତିରେ କିପରି ନାଁ କରିବେ, ବଡ଼ ଓକିଲ ହେବେ—ଏହା ଥିଲା ତାଙ୍କର ପ୍ରଧାନ ଚିନ୍ତା । ଅବଶ୍ୟ ଓକିଲଙ୍କ ଭିତରେ ସେତେବେଳକୁ ତାଙ୍କର ଖ୍ୟାତି ଖୁବ୍ ବଢ଼ି-ଯାଇଥିଲା ।

ଯେଉଁମାନେ ବିଲାତରୁ ବାରିଷ୍ଟରୀ ପାସ୍ କରି ଆସୁଥିଲେ, ଲୋକେ ସେମାନଙ୍କୁ ବେଶି ପସନ୍ଦ କରୁଥିଲେ । ସେମାନଙ୍କଠାରୁ ବେଶୀ ବୁଦ୍ଧିଆ

ହେଲେ ମଧ୍ୟ ଓକିଲଙ୍କୁ ସେତେ ପସନ୍ଦ ନ ଥିଲେ । ହାକମ ହୁକୁମାମାନେ ମଧ୍ୟ ଓକିଲଙ୍କ ଅପେକ୍ଷା ବାରିଷ୍ଟରମାନଙ୍କ କଥାରେ ବେଶି ଡରୁଥିଲେ । ବଲ୍ଲଭଭାଇ ପଟେଲ ସେଥିପାଇଁ ବାରିଷ୍ଟରୀ ପଢ଼ିବାକୁ ବିଲାତ ଗଲେ । ଘରେ ଛୋଟ ଛୋଟ ପିଲା ଦୁଇଟି, ତାଙ୍କୁ ଦେଖିବାକୁ କେହି ନାହିଁ । ବନ୍ଧୁବାନ୍ଧବମାନେ ମନା କଲେ ଯେ, ପିଲାଙ୍କୁ ଛାଡ଼ି ତୁମେ ବିଲାତ ଯାଅ ନାହିଁ । ମାତ୍ର ପଟେଲ ସେଥିରେ ଭୁଲିବା ଲୋକ ନୁହନ୍ତି, ସେ ଭୁଲିଲେ ନାହିଁ । ପିଲା ଦୁହିଁଙ୍କୁ ଜଣେ ବନ୍ଧୁଙ୍କ ଘରେ ରଖି ବିଲାତ ଗଲେ ।

ଦୁଇ ବର୍ଷ ସେଠାରେ ରହି ବାରିଷ୍ଟରୀ ପଢ଼ିଲେ । ସେତେବେଳେ ତାଙ୍କର ଆଉ କୌଣସିଥିରେ ମନ ନ ଥାଏ । ଏପରି କି ବିଲାତରେ କୁଆଡ଼େକି ବୁଲି ଯିବାକୁ ସେ ଥରେ ହେଲେ ମନ କରନ୍ତି ନାହିଁ । ପଢ଼ିବାକୁ ଯାଇଛନ୍ତି, ପଢ଼ା ହିଁ ସାର ।

ଖୁବ୍ ଭଲ ରୂପେ ସେ ବାରିଷ୍ଟରୀ ପାଶ୍ କଲେ । ସାଙ୍ଗେ ସାଙ୍ଗେ ଦେଶକୁ ଫେରି ଆସିଲେ ।

ଏ ଦେଶରୁ ଯେଉଁମାନେ ବିଲାତ ଯାଆନ୍ତି, ସେମାନେ ସେଠାରେ କେତେ ଆମୋଦ ପ୍ରମୋଦରେ ମାତନ୍ତି । ବହୁତ ସାହେବଙ୍କ ସହିତ ବନ୍ଧୁ ବାନ୍ଧନ୍ତି । ଭୋଜଭାତରେ ଯୋଗ ଦିଅନ୍ତି । ବଡ଼ ବଡ଼ ଲୋକଙ୍କ ସହିତ ଦେଖା ସାକ୍ଷାତ କରିବାକୁ ସେମାନଙ୍କ ଘରକୁ ଦଉଡ଼ନ୍ତି । କିଛି ନ ହେଲା ବେଳକୁ ସେ ଦେଶର ଯେତେ ଭଲ ଦେଖିବା ଜିନିଷ ଅଛି, ତାହା ବୁଲି ଦେଖନ୍ତି । ସେଥିରେ କେତେକ ସମୟ ନଷ୍ଟ ହୁଏ, ପଇସା ବି ଖର୍ଚ୍ଚ ହୁଏ । ମାତ୍ର ପଟେଲଙ୍କର ସେ ସବୁ ଆଡ଼କୁ ଭୁଲେ ହେଲେ ନିଘା ନ ଥିଲା । ସେ ସେଠାକୁ ପଢ଼ିବାକୁ ଯାଇଥିଲେ, ପଢ଼ିଲେ—ପରୀକ୍ଷାରେ ପ୍ରଥମ ହୋଇ ପାଶ୍ କଲେ । ତା ପରେ ସିଧା ଦେଶକୁ ଫେରି ଆସିଲେ ।

ଆସିଲାବେଳେ ପୁରା ଦସ୍ତୁର ସେ ସାହେବ ବନି ଯାଇଥାନ୍ତି । ସାହେବଙ୍କ ପୋଷାକ ସବୁବେଳେ ପିନ୍ଧନ୍ତି, ସିଗାରେଟ ରାତି ଦିନ ଖାଉ ଥାଆନ୍ତି ।

ପଟେଲ ବଲାତରୁ ଆସି ବମ୍ବେରେ ପହଞ୍ଚଲେ । ବମ୍ବେ ହାଇକୋର୍ଟର ପ୍ରଧାନ ବିଚାରପତି ଜଣେ ସାହେବ । ପଟେଲଙ୍କ ସହିତ ତାଙ୍କର ଆଗରୁ ଚିହ୍ନା ଥିଲା । ପଟେଲ ତାଙ୍କୁ ଯାଇ ଦେଖା କଲେ । ସେ ପରୀକ୍ଷାରେ ପ୍ରଥମ ହୋଇଛନ୍ତି ଶୁଣି ବିଚାରପତି ଖୁସି ହୋଇଗଲେ । ତାଙ୍କୁ କହିଲେ, "ତୁମେ ବମ୍ବେରେ ରହି ଓକିଲାତି କର; ଏଠା ଆଇନ କଲେଜର ଶିକ୍ଷକ ହେବ । ସେଥିରୁ ମଧ୍ୟ କିଛି ପଇସା ରୋଜଗାର କରିବ ।"

ଚାକିରି କରିବା ପଟେଲଙ୍କ ଧାତୁରେ ସହନ୍ତା ନାହିଁ । ପରର ଅନୁଗ୍ରହପ୍ରାର୍ଥୀ ହେବାକୁ ସେ ମଧ୍ୟ ପସନ୍ଦ କରନ୍ତି ନାହିଁ । ତେଣୁ ବିଚାରପତିଙ୍କ କଥାରେ ରାଜି ହେଲେ ନାହିଁ । ଅହମଦାବାଦ ଚାଲି ଆସିଲେ; ସେଇଠାରେ ଓକିଲାତି କଲେ ।

ଏହି ସମୟରେ ମହାତ୍ମା ଗାନ୍ଧି ଦକ୍ଷିଣ ଆଫ୍ରିକାରୁ ଭାରତକୁ ଫେରି ଆସିଥାନ୍ତି । ସେ ଭାରତର ଭିନ୍ନ ଭିନ୍ନ ସ୍ଥାନ ବୁଲି ତାଙ୍କ ସତ୍ୟାଗ୍ରହ କଥା ବୁଝାଉଥାଆନ୍ତି । ଅହମଦାବାଦରେ ଗୋଟିଏ ଆଶ୍ରମ କରି ସେଠାରେ ରହିଥାଆନ୍ତି ।

ସେତେବେଳେ ଗାନ୍ଧିଜୀଙ୍କ କଥା ଶୁଣି ଅନେକେ ହସରେ ଉଡ଼ାଇ ଦେଉଥାଆନ୍ତି । ପଟେଲ ତ କହୁଥାନ୍ତି—"ଆରେ, ସେ ପାଗଳାଟା କଥା କେହି ଶୁଣ ନାହିଁ ।"

ଥରେ ଓକିଲମାନଙ୍କ ସଭାକୁ ଗାନ୍ଧିଜୀ ଆସିଲେ । ସେଠାରେ ତାଙ୍କର ବକ୍ତୃତା ଦେବାର କଥା । ଯେତେବେଳେ ଗାନ୍ଧିଜୀ ଦେଶର ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣନା କରୁଥାଆନ୍ତି, ପଟେଲ ସେତେବେଳେ ସଭା ଘରର ଗୋଟିଏ କୋଣରେ ବସି ତାସ ଖେଳୁଥାନ୍ତି । ଜଣେ ସାଙ୍ଗ ସଭା ପାଖକୁ ଯିବାକୁ ଉଠି ଠିଆ ହେଲେ । ପଟେଲ ତାଙ୍କ ହାତ ଟାଣି ଧରି କହିଲେ, "ବସ ହେ, ସେ ପାଗଳାଟାଏ, ତା କଥାରେ ପାଣି ତାତିବ ନାହିଁ ।"

କିନ୍ତୁ ସେହି ପଟେଲ ପଛରେ ଗାନ୍ଧିଜୀଙ୍କର ବଡ଼ ଭକ୍ତ ହୋଇଗଲେ ! ତାଙ୍କରି କଥାରେ ଓକିଲାତି ଛାଡ଼ିଲେ, ଘରଦ୍ୱାର ଛାଡ଼ିଲେ, ଜେଲରେ ପଡ଼ିଲେ । ଗାନ୍ଧିଜୀଙ୍କ ମନ୍ତ୍ର ବଳରେ ସବୁ ଓଲଟିଗଲା ।

## କଥା ଓ କାମ ଏକାଠି ହେଲା

ଗାନ୍ଧିଜୀ ଚମ୍ପାରଣରେ ସତ୍ୟାଗ୍ରହ ଚଳାଉ ଥାଆନ୍ତି । ଗୁଜରାଟରେ ଏ କଥା ହୁଲସ୍ଥୁଲ ପକାଇ ଦେଇଥାଏ ।

ଚମ୍ପାରଣରେ କେତେକ ସାହେବ ନୀଳରଙ୍ଗର କାରବାର କରୁଥିଲେ । ସେମାନେ ନୀଳରଙ୍ଗ ଚାଷ କରୁଥିବା ଲୋକଙ୍କୁ ଆଗତୁରା ପଇସା ଦେଇଦିଅନ୍ତି । ପରେ ସେମାନଙ୍କୁ ନାନାପ୍ରକାର ହଇରାଣ କରି ସେମାନଙ୍କ ଯଥାସର୍ବସ୍ୱ ନେଇ ଯାଆନ୍ତି । ଏହି ଅସୁବିଧାରେ ପଡ଼ି ଚାଷୀମାନେ କାଙ୍ଗାଳ ହୋଇଗଲେ ।

ସେତେବେଳେ ତ ଦେଶରେ ସାହେବ ରଜା । ସାହେବମାନେ ହିଁ ଏ ଦେଶର ସର୍ବେସର୍ବା । ତାଙ୍କ ବିରୁଦ୍ଧରେ କିଏ ବା ପାଟିଫିଟାଇବ ?

ଗାନ୍ଧିଜୀ ଏ ଖବର ଶୁଣି ଚମ୍ପାରଣ ଗଲେ । ସେ ସେଠା ଲୋକଙ୍କୁ ଏକଜୁଟ କଲେ । ସାହେବଙ୍କ କଥା ଶୁଣିବୁ ନାହିଁ ବୋଲି ସବୁ ଚାଷୀ ନିୟମ କଲେ । ସାହେବମାନେ ପ୍ରମାଦ ଗଣିଲେ । ସେମାନେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ପାଖରେ ଆପତ୍ତି କଲେ । ଜିଲ୍ଲା ମାଜିଷ୍ଟ୍ରେଟ ଗାନ୍ଧିଜୀଙ୍କ ଉପରେ ୧୪୪ଧାରା ଜାରି କଲେ । ତା ଅର୍ଥ, ତାଙ୍କୁ କହିଲେ, ତୁମେ ଏଠାରେ ରହିପାରିବ ନାହିଁ, କି ଏ ଲୋକଙ୍କୁ କିଛି କହିପାରିବ ନାହିଁ ।

ଗାନ୍ଧିଜୀ ହାକିମଙ୍କ କଥା ଶୁଣିଲେ ନାହିଁ । ତେଣୁ ପୁଲିସ ଆସି ତାଙ୍କୁ ଧରିନେଲେ । ମାଜିଷ୍ଟ୍ରେଟଙ୍କ ପାଖରେ ଯେତେବେଳେ ମକଦ୍ଦମା ବିଚାର ହେଲା, ସେତେବେଳେ ଗାନ୍ଧିଜୀ କହିଲେ, "ମୋତେ ଜେଲରେ ରଖିବ, ରଖ; ସେଥିପ୍ରତି ମୋର ଡର ନାହିଁ; କିନ୍ତୁ ମୁଁ ତୁମ ଅନ୍ୟାୟ ହୁକୁମ ମାନି-ପାରିବ ନାହିଁ ।"

ସେତେବେଳେ ଏହି କଥା ଗୁଜରାଟରେ ଚହଳ ପକାଇ ଦେଲା । ପଟେଲ ଯେତେବେଳେ ଏ କଥା ଶୁଣିଲେ, ସେ ବାବା ହୋଇଗଲେ । ମନେ ମନେ ଭାବିଲେ, "ମୁଁ ସିନା ପାଗଳ କହୁଥିଲି; କିନ୍ତୁ ସେ ତ କମ ଲୋକ ନୁହେ ? ପ୍ରକୃତରେ ତ ସେ ବଡ଼ ବୀର, ବଡ଼ ସାହସୀ ।" ସେଇଠୁ ସେ

ଗାନ୍ଧିଜୀଙ୍କ ଆଡ଼କୁ ଟାଣିଲେ । ଗୁଜୁରାଟରେ ଗୋଟିଏ ବଡ଼ ସଭା କରିବାର ଯୋଗାଡ଼ କଲେ । ସେ ସଭାର ସମ୍ପାଦକ ନିଜେ ହେଲେ । ଗାନ୍ଧିଜୀଙ୍କୁ ସଭାପତି ହେବାପାଇଁ ନିମନ୍ତ୍ରଣ କଲେ । ସେହିଠାରେ ଗାନ୍ଧି ପଟେଲ ଭେଟ ହେଲା । ଯାହା କହନ୍ତି—ନିଆଁ ଘିଅ ଏକାଠି ହେଲେ । ସେଥିରୁ ଏପରି ପ୍ରଳୟ ହେଲା ଯେ, ଇଂରେଜମାନେ ଏ ଦେଶ ଛାଡ଼ି ପଳାଇଗଲେ । ଦେଶ ସ୍ୱାଧୀନ ହେଲା ।

## ସର୍ଦ୍ଦାର ପଟେଲ

ଚମ୍ପାରଣରେ ସତ୍ୟାଗ୍ରହ କରି ଗାନ୍ଧିଜୀଙ୍କର ଜୟ ହୋଇଥାଏ । ନୀଳଚାଷୀମାନଙ୍କର ସବୁ ଦହଗଞ୍ଜର ପ୍ରତିକାର ମଧ୍ୟ ହୋଇଗଲା ।

ସେତିକବେଳେ କଇରାରେ ଚାଷୀମାନେ ସତ୍ୟାଗ୍ରହ କଲେ । କଇରା ବମ୍ବେର ଗୋଟିଏ ଜିଲା । ସେଠାରେ ସେ ବର୍ଷ ବଡ଼ ଦୁର୍ଭିକ୍ଷ ପଡ଼ିଥାଏ; ଫସଲ ଆଦୌ ହୋଇ ନ ଥାଏ । ଚାଷୀମାନେ ସରକାରଙ୍କୁ ନିବେଦନ କଲେ, "ଏ ବର୍ଷ ଆମକୁ ଖଜଣା ଛାଡ଼ି ଦିଅ ।" ସରକାର ତାହା ଶୁଣିଲେ ନାହିଁ । ଖଜଣା ଆଦାୟ କରିବାରେ ଲାଗିପଡ଼ିଲେ । ଯେ ନ ଦେଲା, ତା ଗାଈ ଗୋରୁ, ଘରର କବାଟ ଝରକା ଆଦି ନିଲାମ କରିଦେଲେ ।

ଲୋକେ ବ୍ୟତିବ୍ୟସ୍ତ ହୋଇ ଉଠିଲେ । ସେମାନେ ଗାନ୍ଧିଜୀଙ୍କ ଶରଣ ପଶିଲେ । ଗାନ୍ଧିଜୀ ସେମାନଙ୍କୁ ଉପାୟ ବତାଇ ଦେଲେ—"ତୁମେ ସତ୍ୟାଗ୍ରହ କର । କେହି ଖଜଣା ଦିଅ ନାହିଁ । ଜମି ବା ଘରର ଜିନିଷପତ୍ର ନିଲାମ ହେଲେ କେହି ତାହା ଧର ନାହିଁ । ସରକାର ପକ୍ଷରୁ ଯେଉଁ ଲୋକ ଆସୁଛନ୍ତି, ସେମାନଙ୍କ କଥା ଶୁଣ ନାହିଁ ।"

ଏହି ସତ୍ୟାଗ୍ରହ ଚଳାଇବା ଭାର ପଟେଲ ନିଜ ହାତରେ ନେଲେ । ସେ ଅଳ୍ପ ଦିନ ଭିତରେ ଲୋକଙ୍କୁ ଏମିତି ତାଲିମ କରିଦେଲେ ଯେ, ଜଣେ କେହି ତାଙ୍କ କଥାରୁ ବାହାର ଗଲା ନାହିଁ ।

ସରକାର ପକ୍ଷରୁ ଖଜଣା ଆଦାୟ କରିବାକୁ ହାକିମ ଆସିଲେ । ସେମାନେ ଘର ଘର ପଶି ଖଜଣା ମାଗିଲେ । କେହି ଖଜଣା ନ ଦେବାରୁ

ସେମାନଙ୍କ ଘରୁ କଂସାବାସନ, ଆଉ ସବୁ ଜିନିଷପତ୍ର ବାହାର କରି ନେଲେ । ଗାଈଗୋରୁ ବାନ୍ଧି ନେଲେ । ଏ ସବୁକୁ ନେବ କିଏ ? ମୂଲିଆଟିଏ ମିଳୁ ନାହିଁ, ଗାଡ଼ି ଖଣ୍ଡିଏ ଦେଖା ନାହିଁ । ସରକାରି ଲୋକଙ୍କୁ ଦୋକାନ ବଜାର ବନ୍ଦ । ଏତେ ଜିନିଷ, ଏତେ ଗାଈଗୋରୁ ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ଯିବ କିପରି ?

ସେଇଠାରେ ନିଲାମ ହେଲା । ଶହ ଶହ ଟଙ୍କା ମୂଲ୍ୟର ଜିନିଷକୁ ଟଙ୍କାଏ ଦୁଇଟଙ୍କା ଡାକ ହେଲା । ମାଣ ମାଣ ଜମିର ଦାମ ଚାରି ପାଞ୍ଚ ଟଙ୍କା; ମାତ୍ର ନେଉଛି କିଏ ?

ସରକାରି ଲୋକେ ନିଲାମ ଡାକି ଡାକି ଥକିଗଲେ । ସେଠାରେ କେହି ରହୁ ନାହାନ୍ତି, ଅନ୍ୟ ସ୍ଥାନକୁ ବୁହାଇ ନେବାକୁ ଉପାୟ ବି ନାହିଁ ।

ବହୁତ ଦିନ ଏପରି ଚାଲିଲା । ଶେଷକୁ ସରକାର ପକ୍ଷ ହାରିଲେ । ଚାଷୀମାନଙ୍କୁ ଖଜଣା ଛାଡ଼ି ଦିଆଗଲା । ସେମାନଙ୍କ ଜିନିଷ ସେମାନେ ଫେରି ପାଇଲେ ।

ପଟେଲଙ୍କର ଏହି କାମ ସମୁଦାୟ ଭାରତବର୍ଷରେ ଚହଳ ପକାଇଦେଲା । ଭାରତର ଲୋକେ ତାଙ୍କୁ ଚିହ୍ନିଲେ । ଗାନ୍ଧିଜୀ ତାଙ୍କ ନାମ ଦେଲେ 'ସର୍ଦ୍ଦାର' । ସେହି ଦିନୁ ସର୍ଦ୍ଦାର ପଟେଲ ବୋଲି ସମସ୍ତେ ତାଙ୍କୁ ଜାଣନ୍ତି ।

ଅହମଦାବାଦରେ ବହୁତ ଗୁଡ଼ିଏ ଲୁଗା ତିଆରି କାରଖାନା ଅଛି । ସେଥିରେ ହଜାର ହଜାର ଲୋକ କାମ କରନ୍ତି । ସେମାନେ ଅତି ଅଳ୍ପ ମଜୁରି ପାଆନ୍ତି, କିନ୍ତୁ ଖଟନ୍ତି ବେଶି ।

ସେମାନେ ଥରେ ମେଳି କଲେ । ସେମାନଙ୍କ ହାନିଲାଭ ବୁଝିବାକୁ କାରଖାନା ମାଲିକଙ୍କୁ କହିଲେ । କିନ୍ତୁ ତାଙ୍କ କଥା କେହି ଶୁଣିଲେ ନାହିଁ । ସେମାନେ ଆସି ଗାନ୍ଧିଜୀଙ୍କ ଶରଣ ପଶିଲେ । ଗାନ୍ଧିଜୀ ସର୍ଦ୍ଦାର ପଟେଲଙ୍କୁ ସେ ଭାର ଦେଲେ । ସର୍ଦ୍ଦାର ପଟେଲ ଯାଇ ସେଠାରେ ମୂଲିଆମାନଙ୍କୁ ଏପରି ଏକଜୁଟ କଲେ ଯେ; ସବୁ କାରଖାନା ଏକାବେଳକେ ବନ୍ଦ ହୋଇଗଲା ।

ଶେଷକୁ କାରଖାନାର ମାଲିକମାନେ ବାଧ୍ୟ ହୋଇ ମଜୁରି ବଢ଼ାଇଲେ, ମୂଲିଆଙ୍କ ହାନିଲାଭ ବୁଝିଲେ ।

## ଦେଶ କାମରେ ଲାଗି ପଡ଼ିଲେ

ତା ପରେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ଦେଶର ବହୁତ ଜଣାଶୁଣା ଲୋକେ ଏଥିରେ ଯୋଗ ଦେଲେ । ପଟେଲ୍ ମଧ୍ୟ ଓକିଲାତି ଛାଡ଼ି ଏଥିରେ ମାତିଲେ । ସେତେବେଳକୁ ସେ ସମଗ୍ର ଦେଶରେ ବେଶ୍ ଜଣାଶୁଣା ହୋଇ ଗଲେଣି ।

ଆନ୍ଦୋଳନର ଅଳ୍ପ ଦିନ ପରେ ଗାନ୍ଧିଜୀ ଜେଲ୍ ଗଲେ । ବଡ଼ ବଡ଼ ଲୋକଙ୍କ ମଧ୍ୟରେ ଦୁଇ ଦଳ ହୋଇଗଲା । ଦଳେ କହିଲେ, "ସରକାରଙ୍କ ବ୍ୟବସ୍ଥାପକ ସଭାକୁ ଯିବା ।" ଏମାନଙ୍କୁ 'ସ୍ୱରାଜ ପାର୍ଟି' କୁହାଗଲା । ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ, ପଣ୍ଡିତ ମୋତିଲାଲ ନେହରୁ ପ୍ରଭୃତି ବଡ଼ ବଡ଼ ଟାଣୁଆ ଲୋକେ ଏ ଦଳରେ ରହିଲେ । ଆଉ ଦଳେ କହିଲେ, "ନା, ଗାନ୍ଧିଜୀଙ୍କ କଥା ଅକ୍ଷରେ ଅକ୍ଷରେ ମାନି ଚଳିବା । ସରକାରଙ୍କୁ କୌଣସି ମତେ ସାହାଯ୍ୟ କରିବା ନାହିଁ ।" ଏ ଦଳରେ ସର୍ଦ୍ଦାର ପଟେଲ୍, ଡକ୍ଟର ରାଜେନ୍ଦ୍ରପ୍ରସାଦ ପ୍ରଭୃତି ରହିଲେ ।

ପଟେଲ ପ୍ରଥମେ ଗାନ୍ଧିଜୀଙ୍କୁ ଥଟ୍ଟା କରୁଥିଲେ, କିନ୍ତୁ ପରେ ଏପରି ମଜିଗଲେ ଯେ, ତାଙ୍କ କଥାରୁ ତିଳେ ହେଲେ ଟଳିବାକୁ ଇଚ୍ଛା କଲେ ନାହିଁ । ସେ ସାହେବୀ ଢଙ୍ଗ ଭୁଲିଲେ । ସାଧାରଣ ଚଷାଙ୍କ ପରି ଲୁଗା ପିନ୍ଧିଲେ । ସିଗାରେଟ ଖିଆ, ତାସ ଖେଳ ସାତ ସପନ ହେଲା । ହଜାର ହଜାର ଟଙ୍କା ରୋଜଗାର କରୁଥିଲେ—ତେଣିକି ଆଖି ପକାଇଲେ ନାହିଁ । ପାଗଳ ଗାନ୍ଧି କଥାରେ ନିଜେ ପାଗଳ ହୋଇଗଲେ । ଏହିପରି ପାଗଳ ନ ହେଲେ କଅଣ କୌଣସି କାମ ହାସଲ ହୁଏ ?

ଏହି ସମୟରେ ନାଗପୁରରେ ଗୋଟିଏ ଆନ୍ଦୋଳନ ଆରମ୍ଭ ହେଲା । ନାଗପୁରର ହାକିମ ହୁକୁମ ଦେଲେ, "ରାସ୍ତାରେ କେହି ଜାତୀୟ ପତାକା ଧରି ଯାଇପାରିବ ନାହିଁ ।" ବର୍ତ୍ତମାନ ଆମ ଜାତୀୟ ପତାକା ଯାହାଅଛି

ଫରଫର ଉଡୁଛି । କିନ୍ତୁ ସେତେବେଳେ ଇଂରେଜମାନଙ୍କୁ ଏହା ଯମଦୂତ ପରି ବୋଧ ହେଉଥିଲା ।

ନାଗପୁର ଲୋକେ ଜିଦ୍ ଧଇଲେ, ନା, ଆମ ପତାକା ଆମେ ଧରି ବୁଲିବୁ । ଦଳ ଦଳ ହୋଇ ସେମାନେ ପତାକା ଧରି ରାସ୍ତାରେ ବୁଲିଲେ । ପୁଲିସ ସେମାନଙ୍କୁ ଗିରଫ କଲେ । ସର୍ଦ୍ଦାର ପଟେଲ ଯାଇ ସେଠାରେ ପହଞ୍ଚିଲେ । ସେ ଲୋକଙ୍କୁ ଏକଜୁଟ କରି ଏ ଆନ୍ଦୋଳନ ଚଳାଇଲେ । ଶେଷକୁ ଲୋକଙ୍କର ଜୟ ହେଲା । ହାକିମ ତାଙ୍କ ହୁକୁମ ଉଠାଇ ନେଲେ । ଲୋକେ ମନ ଇଚ୍ଛା ପତାକା ଧରି ବୁଲିବୁଲି କଲେ ।

ଗୁଜରାଟରେ ବର୍ଦ୍ଦୋଲାଇ ବୋଲି ଗୋଟିଏ ଅଞ୍ଚଳ ଅଛି । ସେଠାରେ ସରକାର ନୂଆ ବନ୍ଦୋବସ୍ତ କଲେ । ଚାଷୀମାନଙ୍କୁ କହିଲେ, "ଆଗରୁ ଯେଉଁ ଖଜଣା ଦେଉଥିଲ, ତା ଅପେକ୍ଷା ଆଉ ଚଉଠେ ବେଶୀ ଦେବ ।" ଲୋକେ ଏଥିରେ ରାଜି ହେଲେ ନାହିଁ ।

ସେମାନଙ୍କୁ ରାଜି କରାଇବା ଲାଗି ସରକାର ନାନା ପ୍ରକାର ଜୁଲମ କଲେ । ଏ ଖବର ପାଇ ସର୍ଦ୍ଦାର ପଟେଲ ବି ଯାଇ ସେଠାରେ ପହଞ୍ଚିଲେ । ସେ ଲୋକଙ୍କୁ ଦମ୍ଭ ଦେଲେ । ଲୋକେ ନିଜ କଥାରେ ଟାଣ ରହିଲେ । ସରକାର ଆଉ କୌଣସିମତେ ଲୋକଙ୍କୁ ରାଜି କରାଇ ପାରିଲେ ନାହିଁ । ଲୋକଙ୍କର କଥା ହିଁ ରହିଲା ।

## କଂଗ୍ରେସ ସଭାପତି ପଟେଲ

କେତେ ଦିନ ପରେ ଗାନ୍ଧିଜୀଙ୍କର ପ୍ରସିଦ୍ଧ 'ଲବଣ ସତ୍ୟାଗ୍ରହ' ଆରମ୍ଭ ହେଲା । ଗାନ୍ଧିଜୀ କେତେକ ସାଙ୍ଗ ଲୋକଙ୍କୁ ଧରି ସାବରମତୀରୁ 'ଦାଣ୍ଡି' ନାମକ ସ୍ଥାନକୁ ଚାଲି ଚାଲି ଗଲେ । ସେଠାରେ ସମୁଦ୍ର ପାଣିରୁ ଲୁଣ ରାନ୍ଧିଲେ ।

ସମୁଦ୍ରପାଣିରେ ଲୁଣ ଥାଏ । ସେ ପାଣିକୁ ସିଝାଇ ଦେଲେ ବା ଖରାରେ ଶୁଖାଇ ଦେଲେ ସେଥିରୁ ଲୁଣ ବାହାରେ । ଏତେ ସୁବିଧାରେ ଲୁଣ ମିଳେ, ଅଥଚ ସେ ଲୁଣ କରିବାର କ୍ଷମତା ଆମ ଲୋକଙ୍କର ନ ଥାଏ ।

ଇଂରେଜ ସରକାର ଆଇନ କରିଥାନ୍ତି, ତାଙ୍କ ଦେଶରୁ ସେ ଲୁଣ ଆଣି ଆମକୁ ବିକିବେ । ଆମେ ପଇସା ଦେଇ ତାକୁ କିଣି ଖାଇବୁ । ଆମ ହାତ ପାଖରେ ଲୁଣ ଭଣ୍ଡାର ଥାଇ ମଧ୍ୟ ଆମେ ସେଥିରେ ହାତ ଦେଇପାରିବୁ ନାହିଁ ।

ଗାନ୍ଧିଜୀ କହିଲେ, ପ୍ରଥମେ ଏହି ଆଇନ ଭାଙ୍ଗିବା । ସମସ୍ତେ ଲୁଣ ତିଆରି କରି ଖାଇବା । ସେଥିପାଇଁ ସେ ଦାଣ୍ଡି ପର୍ଯ୍ୟନ୍ତ ଯାଇଥିଲେ । ସେ ଚାଲି ଚାଲି ଯିବା ଆଗରୁ ସର୍ଦ୍ଦାର ପଟେଲ ସେଠାକୁ ଗଲେ । ଲୋକଙ୍କୁ ଗାନ୍ଧିଜୀଙ୍କ କଥା ବୁଝାଇଦେଲେ । ଲୋକେ ଏପରି ମାତିଗଲେ ଯେ, ସମସ୍ତେ ଗାନ୍ଧିଜୀଙ୍କ ସାଙ୍ଗେ ସାଙ୍ଗେ ବାଟ ଚାଲିଲେ ।

ସେହି ସମୟରେ ସରକାର ସର୍ଦ୍ଦାର ପଟେଲଙ୍କୁ ବନ୍ଦୀ କଲେ । ତିନି ମାସ ମାତ୍ର ଜେଲରେ ରହି ସେ ଖଲାସ ହୋଇ ଆସିଲେ । ସେତେବେଳେ ପଣ୍ଡିତ ମୋତିଲାଲ ନେହେରୁ କଂଗ୍ରେସର ସଭାପତି ଥାଆନ୍ତି । ସେ ସର୍ଦ୍ଦାର ପଟେଲଙ୍କୁ ତାଙ୍କ ସ୍ଥାନରେ ସଭାପତି କରିଦେଲେ ।

୧୯୩୧ ମସିହାରେ କରାଚୀରେ କଂଗ୍ରେସ ମହାସଭା ବସିଲା । ସର୍ଦ୍ଦାର ପଟେଲ ଏହାର ସଭାପତି ହେଲେ ।

ଗାନ୍ଧିଜୀଙ୍କ ସହିତ ମିଳାମିଶା କଥାବାର୍ତ୍ତା କରିବାପାଇଁ ଇଂରେଜ ସରକାର ଗାନ୍ଧିଜୀଙ୍କୁ ବିଲାତକୁ ନିମନ୍ତ୍ରଣ କଲେ । ତାଙ୍କ କଥା ମାନି ଗାନ୍ଧିଜୀ ମଧ୍ୟ ସେଠାକୁ ଗଲେ । ଏହାକୁ ଗୋଲଟେବୁଲ ସମ୍ମିଳନୀ କହନ୍ତି । ଏଠାରେ ବହୁତ ଆଲୋଚନା ହେଲା । କିନ୍ତୁ ଇଂରେଜମାନେ ଗାନ୍ଧିଜୀଙ୍କ କଥାରେ ମଙ୍ଗିଲେ ନାହିଁ । ଗାନ୍ଧିଜୀ ଫେରି ଆସିଲେ ।

ଗାନ୍ଧିଜୀଙ୍କୁ ପୁଣି ବନ୍ଦୀ କରି ଜେରବାଡ଼ା ଜେଲରେ ରଖାଗଲା । ତାଙ୍କ ସହିତ କଂଗ୍ରେସ ସଭାପତି ସର୍ଦ୍ଦାର ପଟେଲ ମଧ୍ୟ ବନ୍ଦୀ ହୋଇ ରହିଲେ । ଆଉ ସବୁ ବଡ଼ ବଡ଼ ନେତା, ବହୁତ କର୍ମୀ ଜେଲ ଗଲେ । ପୁଣି ଚାରିଆଡ଼େ ଆନ୍ଦୋଳନ ଘନେଇ ଉଠିଲା ।

କିଛି ଦିନ ପରେ ସରକାର ପୁଣି ଠିକଏ ଦିଲେ । କଂଗ୍ରେସ ନେତାମାନଙ୍କୁ ଖଲାସ କରିଦେଲେ । ସବୁ ପ୍ରଦେଶରେ ବ୍ୟବସ୍ଥାପକ ସଭା ଗଢ଼ାହେଲା । କଂଗ୍ରେସର ଲୋକେ ମନ୍ତ୍ରୀ ହୋଇ ଦେଶ ଶାସନ କଲେ ।

ସେତେବେଳେ କଂଗ୍ରେସ ଗୋଟିଏ ଛୋଟିଆ ସଭା ଗଢ଼ିଦେଲା । ସେହି ସଭା ସବୁ ପ୍ରଦେଶର ମନ୍ତ୍ରୀମାନଙ୍କ କାମ ତଦାରଖ କରିବ, ସେମାନଙ୍କ ସୁବିଧା ଅସୁବିଧା ବୁଝିବ । ସର୍ଦ୍ଦାର ପଟେଲ ସେ ସଭାର ସଭାପତି ହେଲେ ।

## ଦେଶ ସ୍ୱାଧୀନ ହେଲା

୧୯୩୯ରେ ଦ୍ୱିତୀୟ ମହାଯୁଦ୍ଧ ଲାଗିଲା । କଂଗ୍ରେସ ସହିତ ଇଂରେଜ ସରକାରଙ୍କର ପୁଣି ଅମେଳ ହେଲା । ସର୍ଦ୍ଦାର ପଟେଲଙ୍କ କଥା ମୁତାବକ ସବୁ ପ୍ରଦେଶର ମନ୍ତ୍ରୀମାନେ ଗାଦି ଛାଡ଼ି ଚାଲି ଆସିଲେ । ସରକାର ଗୋଟି ଗୋଟି କରି ସମସ୍ତଙ୍କୁ ଜେଲରେ ପୂରାଇଲେ । ଯେଉଁମାନେ ମନ୍ତ୍ରୀ ହୋଇ ଦେଶ ଶାସନ କରୁଥିଲେ, ସେମାନେ ପୁଣି ଜେଲରେ ସଡ଼ିଲେ ।

ତେଣେ ଯୁଦ୍ଧ ଚାଲିଥାଏ, ଏଣେ ଭାରତରେ ଅତ୍ୟାଚାର ହେଉଥାଏ । ଶହ ଶହ ଲୋକ ମଲେ, କେତେ ଗାଁ ଗଣ୍ଡା ପୋଡ଼ିଗଲା, କେତେ ଧନ ସମ୍ପତ୍ତି ନଷ୍ଟ ହେଲା । ଜେଲ ଭିତରେ ରହି ଗାନ୍ଧିଜୀ କାନ୍ଦୁଥାଆନ୍ତି । କଂଗ୍ରେସ ସଭାପତି ସର୍ଦ୍ଦାର ପଟେଲଙ୍କ ଅନ୍ତର ଥରି ଯାଉଥାଏ ।

ଶେଷକୁ ଯୁଦ୍ଧ ସରିଲା । ଇଂରେଜମାନେ ସେ ଯୁଦ୍ଧରେ ଜିତିଲେ; କିନ୍ତୁ ଏଠାରେ ଅହିଂସା ଯୁଦ୍ଧରେ ହାରିଲେ । ଭାରତରେ ଆଉ ରହି ଚଳି ପାରିବେ ନାହିଁ—ଏହା ବୁଝିପାରି ସେମାନେ ଏ ଦେଶ ଛାଡ଼ି ଚାଲିଯିବାକୁ ଠିକ୍ କଲେ ।

୧୯୪୫ରେ ସବୁ ନେତାମାନେ ଖଲାସ ହେଲେ । ବହୁ ଆଲୋଚନା, କଥାବାର୍ତ୍ତା ପରେ ୧୯୪୭ ଅଗଷ୍ଟ ମାସ ୧୫ ତାରିଖରେ ଇଂରେଜମାନେ ଏ ଦେଶ ଛାଡ଼ି ଚାଲିଗଲେ । ପଣ୍ଡିତ ଜବାହରଲାଲ ନେହରୁ ଏ ଦେଶର ପ୍ରଧାନ

ମନ୍ତ୍ରୀ ହେଲେ । ସେ ତାଙ୍କ ସାଙ୍ଗକୁ ସର୍ଦ୍ଦାର ପଟେଲଙ୍କୁ ସହକାରୀ ପ୍ରଧାନ ମନ୍ତ୍ରୀରୂପେ ବାଛିଲେ ।

## ଭାରତକୁ ଗୋଟିଏ କଲେ

ମନ୍ତ୍ରୀ ହେଲା ପରେ ପଟେଲଙ୍କର ପ୍ରଥମ କାମ ହେଲା, ଭାରତକୁ ଗୋଟିଏ ରାଜ୍ୟ କରିବା । ଆଗେ ଏଠାରେ ୫୬୦ଟି ଦେଶୀୟ ରାଜ୍ୟ ଥିଲା । ସେଥିରେ ଜଣେ ଜଣେ ରାଜା ରହୁଥିଲେ । ସେମାନେ ମନ ମୁତାବକ ଲୋକଙ୍କ ଉପରେ ଜୁଲମ କରୁଥିଲେ । ଯେତେ ଇଚ୍ଛା ସେତେ କର ଆଦାୟ କରୁଥିଲେ । ସର୍ଦ୍ଦାର ପଟେଲ ଠିକ୍ କଲେ, ଏ ରାଜାମାନଙ୍କୁ ବାହାର ନ କଲେ ଭାରତ ଏକ ହେବ ନାହିଁ । ତେଣୁ ଖୁବ୍ ସାହସର ସହିତ ସେ କାମରେ ଲାଗିପଡ଼ିଲେ । ଅଳ୍ପଦିନ ମଧ୍ୟରେ ସବୁ ରାଜ୍ୟ ଭାରତ ସହିତ ମିଶିଗଲା । ରାଜାମାନେ ଆଉ ଆପତ୍ତି କରିବାର କିଛି ବାଟ ରହିଲା ନାହିଁ ।

ଆମ ଓଡ଼ିଶାରେ ମଧ୍ୟ ସେହିପରି ୨୬ଟି ସ୍ୱତନ୍ତ୍ର ରାଜ୍ୟ ଥିଲା । ତାକୁ କୁହାଯାଉଥିଲା ଗଡ଼ଜାତ । ସେଠାରେ ଯେଉଁମାନେ ରାଜା ଥିଲେ, ସେମାନେ ନିଜକୁ ଗୋଟିଏ ଗୋଟିଏ ଦେବତା ମନେ କରୁଥିଲେ । ପ୍ରଜାମାନଙ୍କୁ ବହୁତ କଷ୍ଟ ଦେଉଥିଲେ, ସେମାନଙ୍କ ଘରୁ ଧନଦ୍ରବ୍ୟ ଜବରଦସ୍ତି ନେଇ ଯାଉଥିଲେ । ପ୍ରଜାମାନେ ପାଠ ପଢ଼ିଲେ କାଳେ ରାଜାଙ୍କୁ ନ ମାନିବେ, ସେଥିପାଇଁ ସ୍କୁଲ୍ ବସାଉ ନ ଥିଲେ । ମୂଲ ନ ଦେଇ ପ୍ରଜାମାନଙ୍କୁ ନିଜ କାମରେ ବେଠି ଖଟାଉଥିଲେ । ଯେ କାମ ନ କଲା, ତାକୁ ଗଛରେ ବାନ୍ଧି ପକାଇ କୋରଡ଼ା ମାଡ଼ ଲଗାଉଥିଲେ । ସେମାନେ ଏତେ ଅତ୍ୟାଚାର କରୁଥିଲେ ଯେ, ଲୋକେ ଗାଈ ମଇଁଷିଙ୍କ ଉପରେ ସେପରି କରିପାରିବେ ନାହିଁ ।

ସର୍ଦ୍ଦାର ପଟେଲ ଏହା ସହିଲେ କିପରି ?

ସେ ଓଡ଼ିଶାର ଗଡ଼ଜାତଗୁଡ଼ିକ ଓଡ଼ିଶା ରାଜ୍ୟ ସହିତ ମିଶାଇ ଦେଲେ । ଫଳରେ ଆମ ରାଜ୍ୟ ବର୍ତ୍ତମାନ ବଡ଼ ହୋଇ ଯାଇଛି । ମୋଗଲବନ୍ଦୀ ଓ ଗଡ଼ଜାତ ମଧ୍ୟରେ ଆଉ କିଛି ପ୍ରଭେଦ ନାହିଁ ।

ହାଇଦରାବାଦ ଗୋଟିଏ ବଡ଼ ରାଜ୍ୟ । ସେ ରାଜ୍ୟର ନବାବ ପଟେଲ୍‌ଙ୍କୁ ଟିକିଏ ଅଡ଼ି ବସିଲେ । ସର୍ଦ୍ଦାର ପଟେଲ କଣ ଏଥି ଘର କଥାକୁ ଡରନ୍ତେ ? ସେ ହାଇଦରାବାଦ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଦେଲେ । ହାଇଦରାବାଦ ରାଜା ନିଜାମ ଡରିମରି ଶରଣ ପଶିଲେ ।

ଦେଶ ଶାସନ କରିବାରେ ନାନା ଅଡ଼ୁଆ, ବହୁ ଅସୁବିଧା ଥାଏ । କେତେ ପ୍ରକାର ଲୋକ ଅଛନ୍ତି—କିଏ ଗାଳିଦେବ, କିଏ ପ୍ରଶଂସା କରିବ । ଭଲକୁ କିଏ ମନ୍ଦ କହିବ, ମନ୍ଦକୁ କିଏ ଭଲ କହିବ ।

ସର୍ଦ୍ଦାର ପଟେଲ କିନ୍ତୁ ଏ ନିନ୍ଦା ପ୍ରଶଂସାକୁ ଟିକିଏ ହେଲେ ଖାତିର କରୁ ନ ଥିଲେ । ଯାହା ଉଚିତ ଭାବୁଥିଲେ, ସେଥିରେ ଯେତେ ବାଧା ବିପତ୍ତି ପଡ଼ୁ ପଛକେ ବୀର ପରି କାମରେ ଲାଗି ପଡ଼ୁଥିଲେ । କାମଟି ହାସଲ ନ ହେବା ପର୍ଯ୍ୟନ୍ତ ସେ ତାହା ଛାଡ଼ୁ ନ ଥିଲେ ।

୧୯୫୦ ଡିସେମ୍ବର ମାସ ୧୫ ତାରିଖରେ ସେ ହଠାତ୍ ମରିଗଲେ । ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଦେଶ କଥା ଭାବୁଥିଲେ, ଦେଶ ଲୋକଙ୍କ ପାଇଁ କାମ କରୁଥିଲେ ।

ସେ ମରିଯିବାରୁ ଦେଶବାସୀ ତାଙ୍କୁ ଝୁରି ହେଉଛନ୍ତି । ନିଜର ଆତ୍ମୀୟ ଲୋକ ମରିଗଲା ପରି ତାଙ୍କ ମୃତ୍ୟୁ ସମସ୍ତଙ୍କୁ ବାଧୁଛି ।

ସମସ୍ତେ ଦିନେ ନା ଦିନେ ମରିବେ । ସେମିତି ସର୍ଦ୍ଦାର ପଟେଲ ତ ମଲେ; କିନ୍ତୁ ତାଙ୍କ ନାମ, ତାଙ୍କ କାମ ଯୁଗ ଯୁଗକୁ ରହିଥିବ । ଲୋକେ ତାଙ୍କ ନାମ ମନେ ପକାଇ ମୁଣ୍ଡିଆ ମାରୁଥିବେ ।

———

କଟକ ପ୍ରିଣ୍ଟିଂ ହାଉସ୍, ବାଲୁବଜାର, କଟକରେ ମୁଦ୍ରିତ

